ମହିମାବର ବାମଣ୍ଡାଧିଷ୍ଠାତାଙ୍କ ସୁପ୍ରସାଦରୁ

ପ୍ରକାଶିତ ।

# ହେମ କମଳିନୀ ।

ଟ.ର୍ମ୍ମା ଶ୍ରୀ ଚକ୍ରଧର ମହାପାତ୍ର ।

ମହିମାନ୍ୱର ବାମଣ୍ଡାଧୀଶ୍ୱରଙ୍କ ସୁପ୍ରସାଦରୁ
ପ୍ରକାଶିତ ।

# ହେମ କମଳିନୀ ।

ଶର୍ମ୍ମା ଶ୍ରୀ ହରିହର ମହାପାତ୍ର ।

# ହେମ କମଳିନୀ ।

ବାମଣ୍ଡା ରାଜଧାନୀ ଦେବଦୂର୍ଗ ନିବାସି
ଶର୍ମ୍ମା ଶ୍ରୀ ହରିହର ମହାପାତ୍ର କର୍ତ୍ତୃକ
ରଚିତ ।

ହିତୈଷିଣୀ ଇଲେକ୍ଟ୍ରିକ୍ ମେସିନ ପ୍ରେସରେ
ଶ୍ରୀ ଦୀନବନ୍ଧୁ ଗଡ଼ନାୟକଙ୍କ ଦ୍ୱାରା ମୁଦ୍ରିତ ।
ବାମଣ୍ଡା ।
୧୯୧୧

---

ମୂଲ୍ୟ ଟ ୦/୬

# ଉତ୍ସର୍ଗ ପତ୍ର ।

ଦୀନଜନ-ଦୁଃଖ-ଭଞ୍ଜନ, ସଦ୍‌ଜନ-ମନୋରଞ୍ଜନ,
ସର୍ବବିଧ ସଦ୍‌ଗୁଣ-ନିଧାନ, ମହାମାନନୀୟ
ଶ୍ରୀମାନ୍ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ
ବାମଣ୍ଡାଧୀଶ୍ୱର ମହୋଦୟ-
ମହୋଦାର ହୃଦୟେଷୁ ।

ଦେବ !

ଲଳିତ ଲାବଣ୍ୟମୟୀ 'ହେମ-କମଳିନୀ' କୁକ୍ଷଣେ ବିକଶିତ ହୋଇ ନିଷ୍ଠୁର ନିୟତିର ଦାରୁଣ ସନ୍ତାପରେ ଅକାଳରେ ମଉଳି ଯାଇଅଛି । ତା'ର ମଧୁର ସୁନ୍ଦର ଶାଶ୍ୱତ ସୁଷମା ଅଙ୍କନ କରିବା ମୋର ପାଟବହୀନ ଲେଖନୀର ସାଧ୍ୟ ନୋହିଲେହେଁ ଅବସାଦର ଆବେଗରେ ଏହା ଲେଖି ଶ୍ରୀମୁଙ୍କର ପରିଦର୍ଶନ ନିମନ୍ତେ ଭବଦୀୟ କର-କମଳରେ ଅର୍ପଣ କରୁଅଛି । କୃପା ପୂର୍ବକ ଗ୍ରହଣ କଲେ ଅନନ୍ଦିତ ହେବି । ଇତି

ତା ୨୫ । ୯ । ୦୯ — ଶ୍ରୀମୁଙ୍କର କୃପାଭିକ୍ଷୁ
ଦେବଗଡ଼ ବାମଣ୍ଡା — ହରିହର

କବିବର ଶ୍ରୀ ଯୁକ୍ତ ରାୟ ରାଧାନାଥ ରାୟ ବାହାଦୁର

ମହୋଦୟ ଙ୍କ ମନ୍ତବ୍ୟ ।

" ହେମ କମଳିନୀ " କାବ୍ୟ ମୁଁ କବି ଙ୍କ ମୁଖରୁ ଆଦ୍ୟୋପାନ୍ତ ଶ୍ରବଣ କରି ପ୍ରୀତ ହୋଇ ଅଛୁଁ । " ହେମ କମଳିନୀ " ହରିହର ବାବୁ ଙ୍କର ରଚନାର କ୍ରମୋତ୍କର୍ଷ ପରିଚାୟକ ।

ଦେବଗଡ଼
୪—୪—୯୮

ଶ୍ରୀ ରାଧାନାଥ ରାୟ



# ହେମ କମଳିନୀ ।

## ପ୍ରଥମ ସର୍ଗ ।

ବଙ୍ଗଳା ଶ୍ରୀ ବୃତ୍ତ ।

ଶାରଦ ସମୀର ବହେ ଧୀରେ ଧୀରେ,
ମଧୁର ଶାରଦ ଉଷା ,
ଶାରଦୀୟ ଲୀଳା ରଚଇ ଆନନ୍ଦେ
ପିନ୍ଧି ଶାରଦୀୟ ଭୂଷା । ୧

ତରୁଡାଳେ ବସି ବିହଙ୍ଗମ ଗ୍ରାମ
ଢାଳନ୍ତି ଶାରଦ ଗାନ ,
ସେମଧୁର ଗାନେ ମାନସ ବିହଙ୍ଗ
ନୀରବେ ତୋଳଇ ତାନ । ୨

ଶ୍ୟାମଳ ବସନା ଦୂର୍ବା * ଲଳନା
ମୋତି ମାଳ ଯେନ କରେ ,
ଉଷାସୁନ୍ଦରୀ କୁ ଭୂଷା କରିବାକୁ
ଗୁନ୍ଥିଁ ଅଛି ସ୍ନେହଭରେ । ୩

* ଦୂର୍ବା।

ଉତ୍ତରସ୍ବ ସମୀର ବହେ ଧୀରେ , ଅତି
ଚମ୍ପା ପତ୍ର-ବୀଜନ ,
ନିଶେଷେ ସରସେ କୁମୁଦିନୀ ଧନୀ
ଜଣାଏ ଅଭିବାଦନ । ୪
ହୃଦୟ-କାସାରେ ଘନ ଘନ ଥର
ହେବାର୍ ପ୍ରେମ ଲହରୀ ,
ମୃଦୁହାସେ ମନ- ସ୍ନେହ ଜଣାଇଲି
ବଚନେ ଭାଷି ନପାରି । ୫
ପୂର୍ବ ବିମାନେ କନକ ବିମାନ
ଆରୋହି ନଳିନୀଧନ ,
ଶାଶ୍ବତ ବିମଳ ହେମମୟ କରେ
ଚୁମ୍ବିଲେ ପ୍ରିୟା ବଦନ । ୬
ପତି ଅନୁରାଗେ ଫୁଲ୍ଲ କମଳିନୀ
ହାସ-ସୁଧା ଦେଲା ଢାଳି ,
ଘନ ପ୍ରେମ-ଗୀତ ହୃଦୟେ କି ରଖି
ଗୋପନେ ହୃଦେ ସମ୍ଭାଳି । ୭
ରମ୍ୟ ପ୍ରଭାତେ ସରସୀ ଅନ୍ତରେ
ଲଳିତ ବୃନ୍ତ-ଆସନେ ,
କଳିକାଏ ବସି ରତ ଯୋଗ ଧ୍ୟାନେ
ଶାଶ୍ବତ ପ୍ରେମେ ଗୋପନେ । ୮

ପୀରତ-କୁସୁମେ    ମାଳା ଗୁନ୍ଥି, ବାଳା
ଘୋରି ପୀରତ ଚନ୍ଦନ ,
ପ୍ରୀତମୟୀ ପୂଜା—    ସମ୍ଭାର ସଜାଡ଼ି
କରଇ ପ୍ରୀତ-ବନ୍ଦନ । ୯

କରୁଣ ନୀରବେ    କଣାଏଁ କଳକା
" ପ୍ରଭୋ ! ଜଗତ ଜୀବନ ,
ଏ ଘୋର କଷ୍ଟୁଁ    ରକ୍ଷାକର ନାଥ !
ଘେନ ଦୁଃଖୀ-ନିବେଦନ । ୧୦

ମଧୁମୟ ତବ    ବିଧିକୁ ଲଂଘିମୁଁ
ଲଭିଲ ଏଘୋର ଦୁଃଖ ,
ଏ ଦୁଃଖ-ସାଗରେ    ଡାକଇଁ କାତରେ
ଦେଖାଅ ଜଗତ-ମୁଖ । ୧୧

କ୍ଷୀଣା, ହୀନା, ଦୀନା,    ଅଟେଁ ଅଭାଗିନୀ ;
ତଥାପି ତବ କୁମାରୀ ,
ଯଙ୍କ ଅଙ୍କେ ଶଙ୍କେ    ଆତଙ୍କେ ଡାକୁଛି
ଶୁଣ ଦୁଃଖିନୀ ଗୁହାରି ,, । ୧୨

# ଦ୍ୱିତୀୟ ସର୍ଗ ।

ପଲକ ଅନ୍ତରେ ପଲକ ପ୍ରବେଶ
ଦିନପରେ ଅସେ ଦିନ ,
ମାସ ପରେ ମାସ ବରଷ ଅନ୍ତରେ
ବରଷ ଆସେ ବହନ । ୧୩
ହିମେ ଝଲ୍ଲକର ଗନ୍ଧମଞ୍ଜ ନଭେ
ଖେଳ ରଶ୍ମି ଜାଲ ଢାଳି ,
ବାରୁଣୀ ଗଗନେ ପ୍ରବେଶନ୍ତ ଯାଇ
ବଧୂବଧୂ ମନେ ଭାଳି । ୧୪
ଚଞ୍ଚୁ ସାର ପକ୍ଷୀ ଗାଇ ପ୍ରେମଗୀତ
ପ୍ରଶାନ୍ତ ନୀଳ ଗଗନେ ,
ଚନ୍ଦ୍ର ପଞ୍ଚରାଜ ସଞ୍ଚାଳି , ଗମନ୍ତ
ଆନନ୍ଦେ ଫୁଲ୍ଲ ମନେ । ୧୫
ପ୍ରଦୋଷ ସମୀରେ ତରଙ୍ଗେ ତରଙ୍ଗେ
ଖେଳନ୍ତି ଆନନ୍ଦ-ହିଲ୍ଲୋଳ ,
ଧରିତ୍ରୀ ଲୋଚନ ଖେଳାଇ ସୁତନୁ
ପ୍ରଭାତେ ଖେଳ ଉଦାର । ୧୬
କନକ କିରଣ— ସମ୍ଭ୍ରମେ ଗଗନେ
ଖେଳେ ଖେଳେ ଦାମିନୀ ,
ପ୍ରବେଶଇ ଆସି , ସ୍ୱଚ୍ଛେ ଅନ୍ତେ , —
ଦରଶଣୀ କମଳିନୀ । ୧୭

ତପନ ଆଦେଶେ ଆସି ସଖି ପାଶେ
ଖେଳି ତରଙ୍ଗେ ତରଙ୍ଗେ ,
ବିରହ ଯାତନା ଭୁଲାଇବା ଲାଗି
କେତେ ଭଙ୍ଗିରେ ରଙ୍ଗେ । ୧୮

କର୍ମ ଅବଶେଷେ ନର , ପଶୁ , ପକ୍ଷୀ –
ଆଉ ସର୍ବେ ଧରାବାସୀ ,
ପ୍ରବେଶନ୍ତି ଆସି ନିଜ ନିଜ ବାସେ
ଶାନ୍ତି ବିଶ୍ରାମ ମନାସି । ୧୯

ଗୋଟି ଗୋଟି ହୋଇ ତାରା ଫୁଟି ନଭେ
ଦେଖନ୍ତି ଅବନୀ ମୁଖ ,
ସହସ୍ର ନୟନେ ଚାହେଁକି ଗଗନ
ଦୁଃଖିନୀ ଅବନୀ ଦୁଃଖ । ୨୦

ଅନୁରାଗ ଭରେ ସୁଧା ଥାଳି ଧରି
ଢାଳନ୍ତି ସୁଧା ରାଶି ,
ନୀରବେ ଆନନ୍ଦ ଭୁଞ୍ଜଇ ଅବନୀ
ସୁଷମା-ସାଗରେ ଭାସି । ୨୧

ନବ ଅନୁରାଗେ ନାଚେ ପ୍ରେମାବେଗେ
ହାସମୟୀ କୁମୁଦିନୀ ,
କ୍ଳାନ୍ତ ଅବଶେଷେ ନବ ଶାନ୍ତି ଲଭି
ଶୋଇଛି ସୁଖେ ମେଦିନୀ । ୨୨

ନବଶାନ୍ତ ମୟୀ ପ୍ରକୃତ ଅନ୍ତରେ
ଲଳିତ ବୃନ୍ତ-ଆସନେ ,
ବସି ସେ ଦୁଃଖିନୀ " ହାହା କୃପାନିଧି ! "
ଡାକୁଛି ଖେଦ-ବଚନେ । ୧୩

ନିବିଡ଼ ବିପିନ ଅନ୍ଧକାର ମୟ
ଅଟଇ ଆଶ୍ରମ ତାର ,
ହରି ପାଦପଦ୍ମେ ଢାଳି ଅଛି ମନ
ଭୁଲେଇବା ଦୁଃଖ ଭର । ୧୪

ଦେଖରେ ମାନସ ! ଏ ଲଳିତ ଲତା
ମେଲି ଦେ ଜ୍ଞାନ-ନୟନ ,
ନବ ଯୋଗିନୀ ରତ ଯୋଗଧ୍ୟାନେ
ତେଜି ଅଶନ ଶୟନ । ୧୫

ଏ ଭୀମ କନ୍ଦର— ମଧ୍ୟରେ ବସିଛି ,
ଶାନ୍ତ ଲଳିତ ବେଶେ ,
ଶାନ୍ତ-ଭକତି- କୁସୁମ ମାଳିକା
ଦୋଳାଇଛି ଗଳ ଦେଶେ । ୧୬

ଭାଇ , ବନ୍ଧୁ , ଦାସ , ସୁତ , ସୁତା ମେଳେ
ପଡି ମାୟା-ମୋହ-ଜାଲେ ,
ବାସନା ଗଣିକା— ସଙ୍ଗେ ଲୀଳାରଙ୍ଗେ
ସନ୍ତରୁଛୁ ମଦ-ଜଳେ । ୧୭

ଲୋଭ , ମୋହ ବଶେ    ଆଳସ୍ୟ , ବିଳାସେ
ମାତୁଛୁ ତୁ ଦିନ ରାତ ,
ବିଷାଦ ସନ୍ତାପେ    ହୋଇ ଜରଜର
ଶୁଖିଛି ତୋ ମୁଖଭାତ । ୨୮
ଥିଲେ ଯେତେ ଋଷି    ନିବିଡ଼ କାନନେ
ଯୋଗ ଧ୍ୟାନେ ଏକ ପର ,
ଡାକୁଥିଲେ ସେହି    ଜଗତତାତଙ୍କୁ
କଷଣୁଁ ହେବାକୁ ପାର । ୨୯
ତୋ ଆରତ ବାଣୀ    କୃପାନିଧି ଶୁଣି
ଫେଡୁଛନ୍ତି ତୋର ଦୁଃଖ ,
ବାସନା କୁହକେ    ତାଙ୍କ ପଦ ଧ୍ୟାନେ
କିପାଁ ତୁ ସଦା ବିମୁଖ । ୩୦
ଦେଖରେ ତୁ ବାଳେ    ଶରତ ଅନ୍ତରେ
ପ୍ରବେଶ ହେମନ୍ତ କାଳ ,
କମଳିନୀ ଧନୀ    ଅକୁଳ ହୃଦୟା
ଲଭିଛିରେ ହିମଜାଳ । ୩୧
ବିଧିବିଧି ବଶେ    ଶିଶିର ଆଗତ
ହେମନ୍ତ ଋତୁ ଅନ୍ତରେ ,
ଦାରୁଣ ଶିଶିର    ଶାସନ ଜଗତ
ସହେ ଅକୁଳ ଅନ୍ତରେ । ୩୨

ଶିଶିର ଅନ୍ତରେ ନବୀନ ହରଷେ
ପ୍ରବେଶେ ଋତୁ ରାଜନ ,
କୁଞ୍ଜେ କୁଞ୍ଜେ ବୁଲି ଖେଳନ୍ତି ବିହଙ୍ଗେ
ମଧୁରେ କରି କୂଜନ । ୩୩
ମଞ୍ଜରଇ ତରୁ, ଗୁଞ୍ଜରଇ ଅଳି ,
ହସନ୍ତି କୁସୁମ ରାଜି ,
ହସଇ ଆନନ୍ଦେ ପ୍ରକୃତି ସୁନ୍ଦରୀ
ନବବେଶେ ତନୁ ସାଜି । ୩୪
ବକୁଳ-ବୂକୁଳ ଫିଙ୍ଗି ବୃନ୍ତ କୁଳ
ବିତରନ୍ତି ମଧୁବାସ ,
କାନ୍ତ ମଦେ ମୋଦ କିଂଶୁକ ସୁମନ
ପରକାଶେ ମଧୁହାସ । ୩୫
ଏହିରୂପେ ସିନା ଗୁଣହୀନ ଜନେ
ରୂପମଦେ ହୋଇ ଭୋଳ ,
' ଅହଂ ' କାର ବଶେ ଟେକୁଥାନ୍ତି ବୃଥା
ଅମ୍ଭ ଗରିମାର ଖୋଳ । ୩୬
ମଳୟ ବିଭୂତି ବେଣ୍ଟଇ ସମୀର
ବହଇ କୁସୁମ କରେ ,
କୁସୁମ-କାନନ ବାସ୍‌ଘେନ ପୁଣି
ବିତରେ ଅନନ୍ଦ ଭରେ । ୩୭

ହୁଂରଣୀ ନିକୁଞ୍ଜେ   ଦୋଳ ମନ୍ଦବାତେ
  ଲତା-ଦୋଳାସନେ ବସି ,
ସୁମୁଣ୍ଡି-କେତନ   ସଞ୍ଚାଳି ଯୋଗିଆ
  ମଧୁରେ ବଜାଏ ବଂଶୀ । ୩୮
ମଞ୍ଜୁଳ ରସାଳ—   ନିକୁଞ୍ଜେ କୋକିଳ
  ତୋଳଇ ପଞ୍ଚମ ତାନ ,
ସେ ଲଳିତ ଗୀତ   ପୁଲକେ ଜଗନ୍ତି
  ଶୁଣେ କିବା ଦେଇ କାନ ? । ୩୯
ମଧୁର ହାସିନୀ   ମାଧବୀ ରଜନୀ
  ମଧୁର ସୁହାଗ ଭରେ ,
ବେଢ଼ାଇ ଅବନୀ—   ଗଳେ ଭୁଜବଲ୍ଲି
  ପ୍ରେମେ ଆଲିଙ୍ଗନ କରେ । ୪୦
ଚନ୍ଦ୍ରିକା ପିୟୂଷ   ପିଅଇ ଚକୋର
  ନୀଳ ଗଗନେ ବିହରି ,
ମହୋଲ୍ଲାସେ ଉଡେ   ଉଡ଼ଇ ଢେଙ୍କୋଚଇ
  ଖେଳାଇ ସ୍ୱର ଲହରୀ । ୪୧
ନବ ହାସ୍ୟମୟୀ   ପ୍ରକୃତ ଅନ୍ତରେ
  ଲଳିତ ବୃନ୍ତ ଆସନେ
ବସି ସେ ଦୁଃଖିନୀ   ରତ ଯୋଗଧ୍ୟାନେ
  ଶାଶ୍ୱତ ପ୍ରେମେ ଗୋପନେ । ୪୨

ନବ ବସନ୍ତର ମଧୁର କଲ୍ଲୋଳ
ନଖେଳଇ ହୃଦେ ତା'ର
ମୁକତ ଆଶାରେ ଭକତ କେବଳ
କରଇ ଜୀବନେ ସାର । ୪୩

ଦଇବ ବିଧାନେ ଦିନୁଁ ୨ ତା'ର
ପୁର୍ଣ୍ଣି ଲଭୁଅଛି ଅଙ୍ଗ ,
ତମୋରାଶି ମଧ୍ୟେ ଗୂଢ଼ ସଦା, ହୃଦେ
ନଖେଳେ ତୃଷ୍ଣା-ତରଙ୍ଗ । ୪୪

ଦିନ ପରେ ଦିନ ମାସ ପରେ ମାସ
ଯାଉଅଛି କ୍ରମେ ଚଳି ,
କରୁଣ ସ୍ୱରରେ ଡାକେ ସେ ଦୁଃଖିନୀ
"ହେ ଦେବ ବନ୍ଧୁ ସଙ୍ଖାଳି !
କେତେକାଳ ଆଉ ଭୋଗିବି ଏ ଦୁଃଖ
ବିଜନ ଭୀମ ଗହନେ ,
ଅନାଥର ନାଥ ! କରୁଣା ବାରିଧି !
ଚାହଁ କରୁଣ ନୟନେ " । ୪୫

ମଧୁ ଅନ୍ତେ ବହି ବିଷମ ମୂରତି
ପ୍ରବେଶ ଗ୍ରୀଷମ କାଳ ,
ନଦୀ ସରୋବର ତନୁ ହୁଏ କ୍ଷୀଣ
ପତ୍ର ଶୂନ୍ୟ ତରୁ ଡାଳ । ୪୬

ନିଦାଘ ସନ୍ତାପେ  ଜଗତ ଆକୁଳ
ଝରିଲେ ଲୋତକ ଧାର ,
ଏବେ ହେ ଦୁଃଖିନୀ  ବୃନ୍ଦାବନେ ବସି
ଡାକେ "ହାହା ଦୁଃଖହାରି" ! ୪୮



# ତୃତୀୟ ସର୍ଗ ।

ଗ୍ରୀଷ୍ମ ଶେଷେ  ବରଷା ଆସଇ
ଘେନି ସଙ୍ଗେ ଧାରାବାହ ,
ନବ କଳେବରେ  ତରୁ ଲତା-ଦ୍ରୁମେ
ଖେଳେ ପୁଲକ ପ୍ରବାହ । ୪୯
ଆଷାଢ଼ ମାସର  କୃଷ୍ଣାଷ୍ଟମୀ ତିଥି
ମଧୁର ପ୍ରଦୋଷ କାଳ ,
ଖଣ୍ଡ ଖଣ୍ଡ ହୋଇ  ସୁନୀଳ ଗଗନେ
ଖେଳନ୍ତି ଜଳଦ ମାଳ । ୫୦
ଅନୁରାଗେ ସୂର୍ଯ୍ୟ  ଅସ୍ତାଚଳେ ଗଲେ
କମଳିନୀ — ପ୍ରାଣଧନ ,

ହେମମୟ କରେ          ଝୁଲଇଲେ ଥରେ
ତୁମ୍ଭ କଲ୍ମା-ବଦନ । ୫୧
ଧୀରେ ଧୀରେ ଅର୍ପେ          କଲ ଆଚ୍ଛାଦନ
ଅବନୀ-ମୁଖ ରଞ୍ଜନା ,
ଉଠିଲ ମଘେନେ          “ଗୋଘାକଙ୍କ , ଠୋ”
ସନ୍ଧ୍ୟା-ଅଳଙ୍କର ଧୂନା । ୫୨
ବରଷା ସମଧୁ          ହେଲେ ହେଁ, ସଂଚେନି
ନାହିଁ ଏବେ ଘନ ଘନ ,
ସ୍ଥାନେ ସ୍ଥାନେ ନଭେ          ଖଣ୍ଡ ମେଘମଙ୍କେ
ଖେଳନ୍ତି ତାରାଗଣ .
ଜଳଦ ଗବାକ୍ଷ—          ଅନ୍ତରାଳେ ଲୁଚି
ସୁର ସୀମନ୍ତିନୀ ଗଣ ,
ଅନିମେଷ ନେତ୍ରେ          ମୃହାନ୍ତୁ ର ବାଁକ
ଲଭିବାକୁ ଦରଶନ ? ୫୪
ଗୋଟି ଗୋଟି ହୋଇ          ନଦନେ ସଦନେ
ଅଲୋକ ଉଠିଲ ଫୁଟି ,
ଖେଳିଲ ସମୀର          ଯଶୋମାଲନର ( କ )
ସୁରଭି ଭଣ୍ଡାର ଲୁଟି । ୫୫
ଦେବବୃନ୍ଦ ମଧ୍ୟେ          ଉଠିଲ ସଘନେ
* ‘ଇଞ୍ଜିନ’ର ‘ସିଟି’ ବାଜ ,

---

କ * ବାମଣ୍ଡାର୍ଯ୍ୟୀପର ଶ୍ରୀମାନ୍ ସଚ୍ଚିଦାନନ୍ଦ—

ହସିଲ ଉଲ୍ଲାସେ          ସ୍ନିଗ୍ଧ ସୌଦାମିନୀ*
ତପାଇ ସନ୍ତପ୍ତ ହୃଦି । ୫୬
ଦହଣି ଉଠିଲ          ଚପଳା – ଅଧାର
ଭିତର ଗୋଲକ ସ୍ପର୍ଶି,
ଫୁଲ୍ଲ ହାସ୍ୟମୟ          ବସ୍ତୁ ଶତାଧିକ
ଉଦ୍ଭତ ହେଲେ କି ଅସି । ୫୭
ହେଲା କ୍ରମେ ଜିଣି          ବେଳ ଯାମଗତ
ଗଗନେ ଶୋଭିଲା ଶଶୀ
ଦିଙ୍ମୁଖେ ଦିଙ୍ମୁଖ          ମିଶାଇଲା ଜବା
ଧବଳ କର ବରଷି । ୫୮
ସଦନେ ସଦନେ          ପ୍ରଦୀପ ଜଳିଲା
ନୈଶ କର୍ମମାନ ସାରି
ନିଦ୍ରାଦେବୀ-ଅଙ୍କ-          ପଲଙ୍କ ଅଶ୍ରିଲେ
ନାଗରିକ ନରନାରୀ । ୫୯
ହେଲାଣି ଯାମିନୀ          ଦ୍ୱି ଯାମ ଗତ
ସୁପ୍ତ ସବୁ ଜନ୍ତୁମାନେ
ଏ ନିଶି ସଦନ          ଜାଗରିତ କରି
ଜଳେ ଦୀପ ସ୍ଥାନେ ସ୍ଥାନେ । ୬୦

---

*ତ୍ରିଭୁବନ ଦେବଙ୍କ ଦ୍ୱାରା 'ହଟେଣୋମାଇନ୍' ନାମକ ସୁବାସ କୁସୁମ ଓ ଇଲେକ୍ଟ୍ରିକ ଅର୍ଥାତ୍ ବୈଦ୍ୟୁତିକ ଆଲୋକ ପ୍ରଭୃତି ଦେବଦୂର୍ଗକୁ ଆନୀତ ହୋଇଅଛି ।

ଘନ ଘନାନ୍ତର   ହେଲଣି ପଲକେ
ଗଗନେ ଲଜ୍ଜିତ ଶଶି
ବେଳେ ୨ ସ୍ୱପ୍ନେ   କୁହୁଟେ କୋକିଳ
ରସାଳ ମଞ୍ଜୁରୀ-ବାସି । ୬୧
ଫୁଟିଲା ବାଡ଼ି   ବେଲି ବନମାଳୀ
ଥରମୁଖେ ଦେଲେ ଡିଙ୍କି
ପଢ଼ଲଗା ଲଗି   ମାରଲେ ଲୁଗାରେ
ପୁଣି ନଭେ ଘୋର ଝଞ୍ଜି । ୬୨
ଝଟକିଲ କବା   ସେ ଦିଗ ସଦନେ
ମୃଣ୍ମୟୀ ସୌଦାମିନୀ ;
ନବୀନ ଅଲୋକେ   ହେଲା ବିଭୂଷିତ
ନବ ହରଷେ ଯାମିନୀ ? ୬୩
ସରସୀ ଅନ୍ତରେ   ଥିଲା ସଂଗୋପନେ
ଯେ କଳିକା ଯୋଗ ଧ୍ୟାନେ
ଯନ୍ତ ରସେ ଗଢ଼ା   ନନ୍ଦର କାନ୍ତନୁ
ଗଢ଼ା ହେମ ରୂପ ଦାନେ । ୬୪
ଏଣେ ସେ କଳିକା   ହେଲା ବିକଶିତ
ମହେଶ କରୁଣା-ବଳେ ,
ମନ୍ତ୍ରମୟ ଯୋଗେ   ହେମ-ସରସୀ
ପୂର୍ଣ୍ଣ ଅନଙ୍ଗ ଖେଳେ । ୬୫
ଲାଗେ ଧୀରେ ଧୀରେ   ସୁଗନ୍ଧ ସମୀର
ନବ ଅନୁରାଗ ଭରେ ,

ସ୍ନେହ-ତରଙ୍ଗ          ପଠାଇଛନ୍ତି କି
ସ୍ୱର୍ଗୁ, ଧରଣୀର-ଅଙ୍ଗେ । ୬୭
ନବ ବିକଶିତା          ହେମ ନଳିନୀର
କଳିତ ମଧୁର ଖେଳ ।
ତ୍ରିଦିଶ-ଶ୍ରୀ ମନ,          ମର୍ତ୍ତ୍ୟର ସଖ୍ୟରେ
ପ୍ରାଣ ମନ କଲା ମେଳ ।
ଯେ ମାଧୁରୀ-ସୁଧା          ନାହିଁ ବୀଣା ତାନେ
ନାହିଁ କୋକିଳର ଗାନେ
କବି ଲେଖନୀର          ଅଗୋଚର ତାହା
ଗଢ଼ା କେଉଁ ଉପାଦାନେ । ୬୮
ଭୂତଳ ଗନ୍ଧନେ          ଚଳ ଚଳ ଆହା
ଏ ନବ ଲାବଣ୍ୟ ଲତା,
ହେମକାନ୍ତି ଲଭି          ଅବତୀର୍ଣ୍ଣା କିବା
ମୂର୍ତ୍ତିମତୀ କୋମଳତା । ୬୯
ଏ ଅପୂର୍ବ ଛବି          ଦେଖ ହେ କୋବିଦେ
ମହୀରୁହେ ବଲ୍ଲି ରଙ୍ଗେ
ଉପବୀତ ପରି          ବେଷ୍ଟିତ ଅମର (କ)
ସେ ଗିରୁ ଲଲିତ ଅଙ୍ଗେ । ୭୦
ଶାଶ୍ୱତ ବିଧାନେ          ନାଭି ଛେଦନାଦି
କର୍ମ କର ସମାପନ

---

(କ) ନାଭି ରଜ୍ଜୁ

ଏବେ କୁମାରୀ ନ କରୁଛଲେ ଶୀତ-
ସଲିଳେ ଅବଗାହନ । ୨୧
ବ୍ରାହ୍ମ ମୁହୂର୍ତ୍ତେ ପୁର ପ୍ରାଙ୍ଗଣରେ
ହସୁଛି ହେମନଳିନୀ
ଜଳଦ ଗବାକ୍ଷେ ଦେଖୁଛନ୍ତୁ ଲୁଚି
ଗଗନେ ତାରା-କାମିନୀ । ୨୨
ନୀଳ ନଭେ ରବି ଥରେ ଥରେ ଆସି
ଜଳଦେ ଲୁଚାଏ ମୁଖ
ନେତ୍ର ପିପାସାରେ ଚାଳଦ୍ୱୀ ପୁଣି
ଶୀତଳ ସୁଧା ମୟୂଖ । ୨୩
ହେମ ନବନୀତ କୋମ୍ଳ ପିଣ୍ଡୁଳାର
କରୁଛ ଅବଗାହନ
ହିମ ବାୟେ ତନୁ- ମୁକ୍ତି କରୁଛଲେ
ତୃଷ୍ଣାରେ କ୍ଷୀରପାନ । ୨୪
ବହୁ ଦୁର୍ଲଭ ଏହୁ ସ୍ୱର୍ଗୀୟ ମାଧୁରୀ
ନାହିଁ ଭବେ ପଟାନ୍ତର
ଲଳିତ ଅଧରେ କ୍ଷୀର ବନ୍ଦୁ ଲାଗି
ଦିଶଇ କି ମନୋହର । ୨୫
କହ ସୁକୁମାରୀ ! ବାଳକେଳ ତହିଁ
କରୁଥିଲ ଅ-ସ୍ଥାନ

ଜନନୀ ଜଠରେ          କାହୁଁ ଶିଖିଲୁ ଗୁ
    କରିବାକୁ କ୍ଷୀରପାନ । ୭୬
ଜାଣିଲି ମୁଁ ସେହି          କରୁଣା-ବାରିଧି
    ଶୁଣି ମୋ ଆର୍ତ୍ତ-ବଚନ
ଯେ ସଙ୍କଟୁ ମୋତେ          ମୁକୁଳିଲେ ଦେଇ
    ସ୍ୱର୍ଗୀୟ ଜ୍ଞାନ-ରତନ । ୭୭
ଅହୋ କି ଉଦାର          ଅଟେ ସେ କରୁଣା
    ଯାର ଅଦ୍ଭୁତ ବଳେ
ଦିଗନ୍ତ ଗଗନେ          ଖେଳେ ଚଢ଼ଇଆ
    ଗୀତ ଗେଇ କୁତୁହଳେ । ୭୮
ମହା ସରୋବରେ          ଖେଳଇ ମରାଳୀ ,
    କୁରଙ୍ଗୀ ଭୀମ ଗହନେ,
କୋଟି କୋଟି ତାରା          ଗ୍ରହ ଉପଗ୍ରହ
    ଦିଗନ୍ତ ଭୀମ ଗଗନେ । ୭୯
ଯାର କୃପାବଳେ          ଖେଳେ ମରୁ ମଧ୍ୟେ
    ସ୍ୱଚ୍ଛତୋୟା କଲ୍ଲୋଳିନୀ
ତାରି ଦତ୍ତ ଜ୍ଞାନ-          ଧନେ ମହାଧନୀ
    ତୁହି ହେମନଳିନୀ । ୮୦

## ଚତୁର୍ଥ ସର୍ଗ ।

ଧୀରେ ଧୀରେ ଶଶି          ତାରକାଗଣ ସଙ୍ଗେ
    ଦେଖି ଏ ଭବ୍ୟ ମାଧୁରୀ

ଉନ୍ମାଦ ପବନେ ଅନନ୍ତ ଲହରେ
ଘୂର୍ଣ୍ଣ୍ୟମାନ ଜଗ ନାଶୀ । ୮୬
ସୁଲକ୍ଷଣେ ପୂର୍ଣ୍ଣ ଦେଖି ପିତା ମାତା
ଦେଲେ ଅନ୍ନପୂର୍ଣ୍ଣା ନାମ
ଯତନେ ଲାଳିତା ହେଲା ଦିନୁ ଦିନ
ହୋଇ ହୃଦ ଅଭିରାମ । ୮୭
ଦିନୁ ଦିନୁ ତାର ମୁକୁଳିତ ବପୁ
ଫୁଟିଲା ନବଠାଣି,
ନବ ନବ ବେଶେ କଲେ ଆଲିଙ୍ଗନ
ଅନୁରାଗେ ଶୋଭା ରାଣୀ । ୮୮
ମହାନନ୍ଦେ ବାଳା ଦୋଳୁଥାଏ ଯେବେ
ଜନନୀ କୋଳରେ ବସି,
ଦୋଳୁଥାଏ ଯଥା କୁମୁଦିନୀ ଧନୀ
ମୃଦୁ ସମୀରେ ଲହସି । ୮୯
କୋମଳ ତଳପେ କରିଥାଏ ଯେବେ
ଏକାକି ବାଳା ଶୟନ ,
ଜନନୀ ଅନ୍ତରେ ଗୃହେଁ ଚଉଦରେ,
ବୁଲଇ ବ୍ୟଗ୍ର ନୟନ । ୯୦
ସ୍ନେହକାଳେ ସମୀପେ କଲେ ଦରଶନ
ମାତାଙ୍କ ସୌମ୍ୟ ବଦନ.

ଅନନ୍ତ ତଳପେ ଦମ୍ଭି ବାମପଦ
ବକ୍ଷ କରେ ଉତ୍ତୋଳନ । ୯୧
ସେ ଲଳିତ ଭଙ୍ଗି ଦିଶୁଥାଏ ଯେସନେ
"ନିଅ ଜନନୀ ଗୋ କୋଳେ,"
ଲଳିତ ବଦନେ ମୃଦୁ ହାସ ଯେସନେ
ମାଗୁଥାଏ ସ୍ନେହ ବୋଲେ । ୯୨
କେବେ ସହୋଦରୀ କରେ ଭରଦେଇ
ଚଳୁଥାଏ ନୃତ୍ୟ ଲୀଳା,
ଥରେ ଅରେ ଗଣ୍ଡ ଢାଳି ସ୍କନ୍ଧଦେଶେ
ସେ ବାଳା ସୁହାଗ ଶୀଳା । ୯୩
ଥରେ ଥରେ ପୁଣି ଝୁଙ୍କି ପଡୁଥାଇ
ସୁଲଳିତ ହାସ୍ୟ ସୁଧା,
ସେ ମଧୁର ହାସେ ସ୍ୱର୍ଗୀୟ ବାସ୍ତଲ୍ୟେ
ହସଇ କବା ବସୁଧା । ୯୪
ଦିଶେ କି ସୁନ୍ଦର ହେମ ନଳିନୀର
ଭାଲେ ଗୋରଚନା ବିନ୍ଦୁ
ଯାର ଦରଶନେ ହୃଦୟ-ଗଗନେ
ହସେ ଅନୁରାଗ-ଇନ୍ଦୁ । ୯୫
ବାନ୍ଧି ଦେଇଥିଲେ ଆପଣା ଭଣ୍ଡାରୁ
ଶୋଭାଙ୍ଗିଣୀ ସାଜ ଧନ,

ସେହି ଥନେ ଧନୀ   ହେମ-କମଳିନୀ
ହସାଇଲା ଯେ ବଦନ । ୯୬
ମେଲିଲା ନାଗରଙ୍କେ   ପୁରଜନଙ୍କର
ହୃଦ-କାନନେ ବିହରି ,
ପୂଜିଲେ ଆଦରେ   ବନଦେବୀ, ମଣି
ଶୋଭାରାଣୀ-ସହଚରୀ । ୯୭
ବାଳାର ମଙ୍ଗଳ—   କାମନା କୁସୁମ
ଢାଳିଦେଲେ ଶିର ପରେ,
ବସନ୍ତ ସୁଗନ୍ଧ   ପୁଲ୍ଲ କରେ ମନ
ପ୍ରଣୟ ପ୍ରେମ ସମୀରେ ।୯୮
ନାନା ବିହଙ୍ଗ   ତରୁ ଡାଳେ ବସି
ଜଣାଏଁ ଅଭିବାଦନ
ସ୍ନେହ-ମକରନ୍ଦ   ଝରି ପଡୁଥାଏ
ଚାହିଁ ସେ ସୌମ୍ୟ ବଦନ । ୯୯
ସିନ୍ଧୁ ଶୋଭା-କାନ୍ତ   ହୃଦୟ-କାନନେ
ସ୍ନେହ-ଲତା ଯିବି ଧାଇ
ଜନକ ଜନନୀ   ଘର ଭଗିନୀଙ୍କ
ହେଲ ସେ ଦୁଃଖ ମଙ୍ଗଳ । ୧୦୦

## ପଞ୍ଚମ ସର୍ଗ

ବେନି ମାସ ପାତ-   ଦିନ ହେଲା ଗତ
ଲୁଷି ସୁଖ-ମତେ ଅଧା .

ଘଟିଲା ଯେତେବେଳେ ଦାରୁଣ ଘଟଣା
    କେମନ୍ତେ କହିବି ତାହା । ୧୦୧
କେଉଁ ସ୍ୱରେ ଅଙ୍କ ବାନ୍ଧିବ ଏ ବୀଣା
    କହ ଦୟାମୟୀ ବାଣୀ !
କେମନ୍ତେ ଗାଇବ ସେ ଦାରୁଣ ଗୀତ
    ହୃଦୟ ହେଉଛି ହାନି । ୧୦୨
ଅଷ୍ଟମ ଦିବସେ ନବ କୁମାରୀର
    ଦେହେ ହୋଇଲା ଜ୍ୱର,
ଦାରୁଣ ସନ୍ତାପେ ଶିରୀଷ କୋମଳ
    ତନୁ ହେଲା ଜରଜର । ୧୦୩
ଏକାଳେ ଜନକ ନଥିଲେ ସଦନେ
    ଯାଇଥିଲେ ଦେଶାନ୍ତରେ;
ପ୍ରଭାକାଳେ ପ୍ରାଣ- ଢାଳିଲେ ଜନନୀ
    ତାନ୍ତା ବହ୍ନି ଅନ୍ତରେ । ୧୦୪
ଶ୍ରବଣ ଅନ୍ତେ ସଦନ ସମୀପେ
    ନାରିକେଳ ବୃକ୍ଷ'ପରେ,
ବସି ଚିଲ୍ଲ ପକ୍ଷୀ ଘୋର ଅମଙ୍ଗଳ
    ରଟିଲା ବିକଟ ସ୍ୱରେ । ୧୦୫
କାନ୍ଦିଲେ ଅକୁଳେ ଉଭେ ସ୍ନାନଗଙ୍କି
    ମୁଖ କଣ୍ଠ ଉତ୍ତୋଳନ

ଅସ୍ତାଚଳ ପାରେ ପ୍ରବେଶିଲେ ଯାଇ
କମଳିନୀ ପ୍ରାଣସାଇଁ । ୧୧୧
ଧୀରେ ବିଭାବରୀ କଲା ଆଚ୍ଛାଦନ
କାଳିମ୍ନି ଅଗ୍ର ବଦନ ,
କି ଘୋର ବିପଦ ଶଙ୍କାରେ ଯେସନେ
ବିଷାଦେ କରେ ରୋଦନ । ୧୧୨
ଗୁହ୍ମ ନୃଷିଦଗେ ଖଣ୍ଡୋତନାଦେଇ
ରସାଳ ପାଦପ ପରେ,
ପଞ୍ଜରୁଛ କୀର ଅଷ୍ଟୁଷ ଚେଟକ
କରୁଣ ବଦନ୍ତି ସ୍ୱରେ । ୧୧୩
ହେଲା ଗତ ପ୍ରାୟ ଦେବୀଯାମ ନଶି
ଭାଦ୍ରବ ଶୁକ୍ଳ ଦଶମୀ ,
କି ଘୋର ଉଦାସ ଜାର ବାକ୍ୟ ହୁଦେ
ହେଉଛି ଉଦ୍ବେ ଭଗମି । ୧୧୪
ଦକ୍ଷିଣାଶା ମୂଳ ଉଦୁକିଲ ଏକା
ଅଦ୍ଭୁତ ଭୈରବ ରବ
ଝଞ୍ଜାନିଳ ବୋଲି ଭ୍ରମ ଉପୁଜିଲା
ସ୍ତମ୍ଭିତ ହୃଗ ହବେ । ୧୧୫
ଭାଳି ଉଠିଲା କି ଅନନ୍ତ ଗଗନେ
ଅନନ୍ତ ହୃଦତ ଧନି ,

କା'ର ଅବାହନ ପାଇଁ ଅବିଳମ୍ବ
ଧରୁଁ କି ସୁର ରମଣୀ । ୧୧୬
ସେ ଗମ୍ଭୀର ଧ୍ୱନି ଶୁଣି ସୁକୁମାରୀ
ଚାହିଁ କମଳୀ ବଦନ ,
ସନ୍ତୁଷ୍ଟ ଅନ୍ତର ମୁଖ ଚାହିଁ ପୁଣି
ମୁଦିଲ ବେନି ନୟନ । ୧୧୭
କହୁଁଣେ ଜଣାଏ ଘଟଣି ନାହିଁଲି
ବାଳାର ସୈରୁ ବଦନ ,
ଦାରୁଣ ସଂଶୟ— ଉର୍ମି ଅଙ୍କାଘାତେ
ଦୋଳାଇଲା ପ୍ରାଣ ମନ । ୧୧୮
ରୋଧ-ଝଞ୍ଜାକା କର ପ୍ରହାରତ
ଉଡ଼ାଇଲ ପ୍ରାଣ ବାୟୁ
ଅକ୍ଷୟ ଅକ୍ଷରେ ଲେଖି ଦେଇ ଗଲ୍ହିଁ
"ସରିଗଲା କ୍ଷୀଣ ଆୟୁ" । ୧୧୯
ଉଠିଲା ସହସା ସେ ପୁର କାନନେ
ଶୋକ-ହୁତାଶନ ଜଳି
ଝଳିଲା ସହସା ଶୋକ-ଝଞ୍ଜାନିଲ
ଶତ ହୃଦ-ଲତା ଦଳି । ୧୨୦
ଏ କରେ ! ଦଇବ ଦାରୁଣ ବିଧାନ
ରୋପି ଲତା, ନହେ ପାଳି

ନଳିନୀ ଫୁଲଟି ନପାରିଲୁ ମୁଁ ଲୋ
ଦୀର୍ଘ ଧୂମାଗତ ଜାଳି । ୧୧
ଦମ୍ଭଦମ୍ଭ କରେ ଦେଇ ଗୋଟିଏ ଅଶ୍ରୁ
ନଅନ ଧୂଳି ଲୁହାଇ
ଅଞ୍ଜଳିରେ ନେଇ ଦେଲ, ପୁଣି ଦିଏ
ଅଞ୍ଜ ପରଲ କଡ଼ାଇ । ୧୨
ତୋଉଁ ସୁନ୍ଦରେ ନାଶିଲୁ ଏ ଲତା
ଦାରୁଣ ଅଗ୍ନି ପାତେ
ଶତ ଛିଦ-ଡରୁ ବେଢ଼ିଲୁ ଏ ପେନ
ଦାରୁଣ କୁଠାର ଘାତେ । ୧୩
ହୁଟନ୍ତି କର ମାର କାନ୍ଦନ୍ତି ଜନନୀ
ଧରା ପରେ ଢାଳି ନୀର,
ଆଶ୍ରୁମୀ ଲେଖନୀ ପାରିବ କି ଲେଖି
ସେ ଶୋକାଦ୍ଧାଦ ଗୀର । ୧୪
ଭାଷନ୍ତି ଆକୁଳେ "ଦେଲି କି ଗଳୁ ମୋତେ
'ତୈଳ ପରାଣ ଧନ ?
ଦେଖାଇବୁ ନାହିଁ ଏବେ କି ତୋହର
ସହାସ ଚନ୍ଦ୍ର ବଦନ । ୧୫
କେଯା ଛଡ଼ ମା ଗୋ! ମାଗୁଛି ଆକୁଳେ
ରକ୍ଷ ମୋ ଜନନୀ ବାଣୀ

ଏ ବିକଳ ବେଶ        ଦେଖାଇ କିପାଁ ମୋ
ହୃଦୟ ଦେଉଛୁ ହାଣି" ।୧୨୬
ଏହିରୂପେ କେତେ        ସୌଦାମ୍ନ ଜନନୀ
କାନ୍ଦି କୋଳ ପାଗବାରେ ,
ଦାରୁଣ ଶୋକର        ଦାରୁଣ ଉଚ୍ଛ୍ୱାସ
ଉଠିଲା ସେ ପରିବାରେ ।୧୨୭
ଲୋକ ଜନେ ମିଳି        ସମାଧି ନିମନ୍ତେ
ନେଲେ ସେ ମୃତ ଶରୀର
"ହେମ ତନୁ ମାଟି        ହୁଅଇ କ୍ଷଣକେ"
ଏହି କି ବିଧି ବିଧିର ? ୧୨୮
ହା ! ହା !! ରେ ଦଇବ !!        ଏକି ଲୀଳାତୋର
କେଉଁ ହୃଦୟରେ ଅହା !
ହରି ନେଲୁ ଅଜି        ଏ କନକ ଲତା
ଦେଉଥିଲୁ ଯାଚନେ ଯାହା । ୧୨୯
ସନ୍ତାପ ସାଗରେ        ସନ୍ତରୁ ଜନନୀ
ଦେଖିଲେ ଉଷା ଆଲୋକ
ଉଷା ସମୀରଣ        ଜନମାଇଁ ଦେଲା
ଦ୍ୱିଗୁଣେ ହୃଦେ ଶୋକ । ୧୩୦
ସୌଦାମ୍ନ ଅଛୁଲେ        "ପାଇଗଲୁ ସ୍ୱର୍ଗ
ଥହାରେ ପସ୍ତଣ ଧନ !

ଆକୁଳେ ମୋହ୍ରଦ ଭାଷାଇ କାକୋଳେ
କରନ୍ତୁ ସୁଖେ ଶାନ୍ତ୍ୱନ ! ୧୭୨
ଆହା ପୂର୍ଣ୍ଣି ମୋର ଦେଖାଅ ମା ବାରେ
ତୋ ଗୃରୁ ଲଲିତ ମୁଖ
କାହିଁ ଯାଇ ସତେ ରହିଛୁ ଗୋପନେ
ନଦେଖୁ କି ମୋର ଦୁଃଖ ? ୧୭୩
ମୋହର କୋଳରେ ବସିଥିଲୁ ତୁହି
କାଲି ଏ ଉଷା ଆଲୋକେ,
ତେଜି ଧରାଧାମ ଅଛି ଏବେ କାହିଁ
ବିହରୁଛୁ କେଉଁ ଲୋକେ ?
ଏତେବେଳ ଯାଏ କେଉଁ ତରୁତଳେ
ଶୋଇଛୁ ମା ! ଆନନ୍ଦେ,
ବାରେ ହେଲେ ଅସି କରି କ୍ଷୀରପାନ
ଫେରିଯାଅ ତୋ ଭୁବନେ । ୧୭୪
'ମା !' ବୋଲି ତୋତେ ଡାକୁଥାଇ ସଦା
ନଥରଇଁ ତାର ନାମ,
କେଉଁ ଅନାଦର କରି ଅପମାନେ
ହେଲୁ ମାତ୍ର ମୋତେ ବାମ ୧୭୫
"ଶ୍ୱରଘନେ ଧନ ଭେଟିଯିବୁ ବୋଲି
ଛାଡିଥିଲୁ କି ମା ସତେ ?

ତେଣୁ କି ନୟନେ   ଦିବ୍ୟ ଲୀଳାମାନ
    ନ ପାରୁଥିଲୁ ଧରିତେ । ୧୩୬
ଅମୃତ ସୁଷମା—   ମଣ୍ଡି ଅନୁପମା
    ତୋର ସେ ରୂପ-ମାଧୁରୀ,
ଦରଶନ ମାତ୍ରେ   ହରଷ ପିୟୂଷେ
    ହୃଦ ଯାଉଥିଲା ପୂରି । ୧୩୭
ସୁଲକ୍ଷଣେ ପୂର୍ଣ୍ଣ   ଦେଖି ତୋର ଅଙ୍ଗ
    ଭାଷୁଥାନ୍ତି କେତେ ଜନେ,
ସୁର ପୁର ଛାଡ଼ି   ଜାଣେ ଏ କୁମାରୀ
    ଜନମିଛି ଏ ସଦନେ । ୧୩୮
ଶାପବଳେ ପାପ   ମେଣ୍ଟାଇବା ପାଇଁ
    ଆସିଥିଲୁ କି ମା ! ସଙ୍ଗେ
ଗୃହିଜନ ଭବେ   ରଙ୍ଗେ ଖେଳିଗଲୁ
    ଜ୍ୟୋତିର୍ମୟ ଦିବ୍ୟ ପଥେ । ୧୩୯
କାହିଁ ଯାଇ ଏବେ   ନାଚୁଅଛୁ କାହିଁ
    ଅହାରେ "ନାଚୁଣି ଘୁଡ଼ା",
ସେ ମଧୁର ଛବି   ଦେଖିବାକୁ ମୋର
    କପାଳର ହେଲା ଯୁଡ଼ା । ୧୪୦
କାହିଁ ଯାଇ ସତେ   ଫୁଲୁଥିବୁ କାହିଁ ?
    ଅସ ମୋ "ଫୁଲୁଣି ହାତ",

ସେ ମଧୁର ଛବି ନଦେଖି ତୋହର
ଫାଟିତ ଯାଉଛି ଛାତି । ୧୪୧
କାହିଁ ଯିବି ମା ଗୋ? କାହିଁ ଗଲେ ସତେ
ଲଭିବି ତୋ ଦରଶନ ,
ଏ ବିଷମ ବିଷ — ଜ୍ୱାଳା ନିବାରିବ
ଚାହିଁ ତୋ ସୌମ୍ୟ ବଦନ । ୧୪୨
ମଧୁମୟ ତୋର ଭାବ ଭଙ୍ଗିମାନ
ଖେଳୁଛି ମା ! ସ୍ମୃତିପଟେ
'ନାଗେଶ୍ୱର' ହାର ନାଗବେଶେ ଅଛି
ଦହୁଛି ହୃଦ ତଟେ । ୧୪୩
କଥାଛଳେ ଦିନେ କି ଲେଖା ବୋଇଲ
ପଚାରିଲି ତୋ ସୋଦର,
କୋମଳ ଅଧରେ "ଉର୍ଣ୍ଣ" ବୋଲି ଅହା
ଦେଇଥିଲୁ ତୁ ଉତ୍ତର । ୧୪୪
ଅହା ଅନ୍ଧ ମୋର ! କେଉଁ ତରୁ ତଳେ
ପିଉଅଛୁ ଏବେ ଉର୍ଣ୍ଣ ,
ଭାଳିଥିଲି ତୁମୋ ଆଶା-କଳ୍ପ-ଲତା
ନଭାଉଲୁ ମା ! ଏ ଦୁଃଖୁଁ ? ୧୪୫
ସହୋଦର କୋଳେ ଝୁଲୁଥାଉ ଯେବେ
ପରକାଶି ମୃଦୁ ହାସ

ହୃଦ-ନଭେ ମୋର          ଅନନ୍ତ ଚନ୍ଦ୍ରମା
ହେଉଥାଏ ପ୍ରକାଶ । ୧୪୬
ଜାଣିତ ନଥିଲି          ଅଙ୍କେ ତୋହର
ସଞ୍ଚିବି ଅଭିଳାଷ
ଜାଣି ନଥିଲି ମା          ହୃଦ-ମଣି ମୋର
ମରକତ ହେବ ଶିଳା । ୧୪୭ ।
"ଝିଅଟି ଦୁଲ୍ଲା" ବେଲେ          କୋଳେଥିରେ ତୋତେ
ଚପିଥିଲି ମୁହିଁ ଅହା !
'ଝିଅଟି ତୋର' ବୋଲେ          -ପିନ୍ଧି ନୀଳଗାଲ୍
ସେହତ ନୋହିଲେ ସ୍ୱାହା ।୧୪୮
ବନ୍ଧୁ ନାରାୟଣ-          ଶ୍ରୀପଦେ ଶରଣ
ପଶି ମାଗିଥିଲି କେତେ !
ସବୁ ହେଲା ବୃଥା          ଦେବ ଦେବୀ ପଦେ
ସେବା କରିଥିଲି ଯେତେ । ୧୪୯
ଅହା ! ଚନ୍ଦ୍ରଚୂଡ଼ !!          ପଲକ ମାତ୍ରକେ
ସାରିଦେଲୁ ସବୁ କଥା ,
ପଲକ ମାତ୍ରକେ          ହୃଦ-ଦେଶେ ମୋର
ଢାଳିଦେଲୁ ଅହା ମଥା । ୧୫୦
କେମନ୍ତେ ବଞ୍ଚିବି?          ଏ ଦାରୁଣ ଦୁଃଖେ
କେମନ୍ତେ କରିବି ଛଳ

ଦେଇଗଲୁ ବ ମା ଏ ଦାରୁଣ ଗୀତ
ଗାଇବାକୁ ଦନଗତ " । ୧୫୧
ସେ କରୁଣ ବାଣି କବ ହୃଦେ ଅଜି
ଜନମାଏ ଘୋର ବ୍ୟଥା,
ନୀରବ ନିଷ୍ପନ୍ଦ ନିଶ୍ଚଳ ଲେଖନୀ
ଚାଲି ନପାରଇ ମଥା । ୧୫୨



## ଷଷ୍ଠ ସର୍ଗ ।

ଏ ଦାରୁଣ କାଳେ ଆସ ହେ ଅଙ୍ଗିରା !
ଶୁଣ ଏ କରୁଣ ବାଣି ,
ଆସ ପୁନର୍ବସୁ ! କରୁଣା-ନିଧାନ
ଭେଷଜ-ପିୟୂଷ-ପାଣି । ୧୫୩
ଆସ ଜମଦଗ୍ନି ! ଅସିତ ! ଅଗସ୍ତ୍ୟ !
ବଶିଷ୍ଠ ! ବାଦରାୟନ ।
ଶାଣ୍ଡିଲ୍ୟ ! ଶୌନକ ! କାଶ୍ୟପ ! ଗାଲବ
କାଣ୍ବାୟନ ! କାତ୍ୟାୟନ
ଜ୍ଞାନ-ମହୋଦଧି ମହାଋଷି ବୃନ୍ଦ
ଅହେ ବ୍ରହ୍ମଜ୍ୟୋତି ପୁଞ୍ଜ
କୃପାବନ୍ତ ଆଜି ଦେଖ ବାରେ ଆସି
ଭାରତ-ହୃଦୟ—କୁଞ୍ଜ । ୧୫୪

ଛାଡ଼ିଲ ଯାଉଛି  ତରୁ ଲତା ସଙ୍ଗ
ନ ଦେଖିଲେ ମୃଦୁ ମଳୟ ,
ଶୁଖି ଯାଉଅଛି  କୁସୁମ ବଦନ
ଶାଖାର ଶୋଭା ବିଲୟ । ୧୫୬
ତେଣାତଳେ ମୁଖ  ଲୁଚାଇ ବିହଙ୍ଗ
ବସିଅଛି ତରୁ ଡାଳେ
ମନୋଦୁଃଖେ ଅଳି  ନକରେ ଗୁଞ୍ଜନ
ଲଭି ପଦ ଅନୁସ୍ୱଲେ । ୧୫୭
ଏକେତ ବସନ୍ତ  ଯାଉଅଛି ଚଳି
ଆସିଛି ନିଦାଘ କାଳ,
ଅସ୍ପୂକ୍ତନ୍ତ ପୁଣି  ସହଚର ବେଶେ
ନବ ନବ ବ୍ୟାଧି ଜାଲ । ୧୫୮
ବରଷିବା ମନ୍ଦ  ଭୀମ କଳେବର
ବିକଟ ହାସ୍ୟ ପ୍ରକାଶି ,
ଢାଳି ଦେଉଛନ୍ତି  ଭାରତ ହୃଦୟେ
ସନ୍ତାପ-ଅନଳ ରାଶି । ୧୫୯
ବିକଟ ବଦନ  କରାଳ, ଦଶନ,
ବିକଟ ନର୍ତ୍ତନ ଖେଳା
ନୈରାଶ୍ୟ—ସାଗରେ  ବୁଡ଼ାଏ ହୃଦୟ
ଭକ୍ତି ସୁଖ ଶାନ୍ତି ମେଳା । ୧୬୦

ପିନ୍ଧି ଚର୍ମ ବାସ ଶାର୍ଦ୍ଦୂଳ, ଶୃଗାଳ
ଉଲ୍ଲୁକ, ଗୃଧ୍ର ବାହନେ
କରବାଳ କରେ କାଳିକା ହୃଦୟେ
ବିହରନ୍ତୁ ନିଶୁଂଭନେ । ୬୧
ପଶି ଗ୍ରାମେ ଗ୍ରାମେ ସଦନେ ସଦନେ
ଧ୍ବଂସ ନର ଦ୍ବାରାନାରୀ । ୬୨
ବୃଦ୍ଧ ବାଳକ ଯୁବକ ଯୁବତୀ
ବଳେ କାଢ଼ନ୍ତୁ ଉଠାଇ । ୬୨
ଶତ ଜନ ଅଣା— କଲ୍ଲୋଳ ବେଷ୍ଟିତ
ନନ୍ଦନ ପ୍ରତିମା ମାନ,
ବଳେ ଧଇନେଇ ତାର ବକ୍ଷସ୍ଥଳେ
କରନ୍ତୁ ରୁଧିର ପାନ । ୬୩
ମହାଭୟେ ହୀନ ମହାଶୋକେ କ୍ଷୀଣ
ଭାରତ ସନ୍ତାନ ମୂର୍ଖ,
ଲୁପ୍ତାବଶେଷ ଅସି କର ଦରଶନ
ହୃଦୟ ଭେଦ ଦୁଃଖେ ୬୪
ଦେଖୁଛ ତ ଅଛି ସେହି ପୁଣ୍ୟସ୍ଥଳ
ସେହି ଗିରି ହିମାଳୟ ।
ଧୋଇଦେବେ ତାହା — ନନ୍ଦନୀ ତବସେ —
ଚରଣ—କରୁଣା ମୟ । ୬୫

ଭୃଙ୍ଗ ବନ୍ଧନରେ ବନ୍ଦ ଥିଲା ବୃନ୍ଦ
ଲଭିଛନ୍ତି ଘୋରବନ୍ଧେ ,
ଭୃଙ୍ଗର ଝଙ୍କାର ଶୁଣି ଭୀତ ଚିତ୍ତେ
ହସନ୍ତି ପ୍ରଫୁଲ୍ଲ ମନେ । ୧୬୬
ଅସ ଅସ ବାରେ ଘେନ ନିବେଦନ
ମିଳି ସେ ପୁଣ୍ୟ ପ୍ରାନ୍ତରେ
ଦୀକ୍ଷିତ କରାଅ ଭାରତ ସନ୍ତାନେ
ସେହି ଅମୃତ ମନ୍ତ୍ରରେ । ୧୬୭
ସେ ଅମୃତ ଧାର ବରଷି ଭାରତେ
ନିଭାଅ ଶୋକ ଅନଳ ,
ମହା ମହୋତ୍ସାହେ ମାତୁ ଏ ଭାରତ
ଲଭୁ ନବ ତେଜ ବଳ । ୧୬୮
ମାନ ଦ୍ୱେଷ ହିଂସା ଆଳସ୍ୟ ବିଳାସ
ତେଜି ଭାରତ ସନ୍ତାନେ ,
ସମସ୍ତେ ଅନନ୍ଦେ ତବ ବନ୍ଦନା
ସେ ଶୁଭମନ୍ତ୍ର—ଘୋଷନ୍ତେ । ୧୬୯

ସମ୍ପୂର୍ଣ୍ଣ ।

---

# ବିଜ୍ଞାପନ ।

**ବିବିଧ ସଙ୍ଗୀତ** — କବିବର ଶ୍ରୀଯୁକ୍ତ ସ୍ୱପ୍ନ ସୁଧାନାଥ ସ୍ୱପ୍ନ ବାହାଦୂରଙ୍କ ଦ୍ୱାରା ପ୍ରଶଂସିତ । ମୂଢ଼ଗ୍ରନ୍ଥ ସ୍ୱରସ୍ୱରିଣୀମଯ୍ୱ ଗୋ ୮୦ ଟି ବିବିଧ ରସାତ୍ମକ ସଙ୍ଗୀତରେ ପୂର୍ଣ୍ଣ । ସୁଲଭ ମୂଲ୍ୟ ୫ ୦ । ଚାରିଅଣା ମାତ୍ର ଏକ-କାଳୀନ ବାରଖଣ୍ଡରୁ ଅଧିକ ନିଅନ୍ତ କଲେ ପ୍ରତ୍ୟେକ ଖଣ୍ଡ ୫ ୦ ୲ ୬ ମୂଲ୍ୟରେ ପାଇ ପାରିବେ ।

**ବିସ୍ମୃତିର ପରିଣାମ** — ଆଧ୍ୟାତ୍ମିକ ଭାବମୟ ପ୍ରାକୃତିକ ବର୍ଣ୍ଣନା ସହ ସ୍ୱଦେଶର ଗୋଟିଏ ଜାତୀୟ ଭାବନା ଲକ୍ଷିତ ଅଛି । ସ୍ୱଦେଶ ପ୍ରେମିକ ମାନଙ୍କର ଥରେ ମାତ୍ର ପଠନ କରିବା ଉଚିତ । ପ୍ରତ୍ୟେକ ଖଣ୍ଡ ମୂଲ୍ୟ ୫ ୦ ୵୬ ଦୁଇ ପଇସା ମାତ୍ର ।

ଏକକାଳୀନ ବାରଖଣ୍ଡରୁ ଅଧିକ ନିଅନ୍ତ କଲେ ଅର୍ଦ୍ଧ ମୂଲ୍ୟରେ ପାଇ ପାରିବେ ।

---

**ହେମ କମଳିନୀ** — କବିବରଙ୍କ ଦ୍ୱାରା ପ୍ରଶଂସିତ । ପ୍ରତିଖଣ୍ଡର ମୂଲ୍ୟ ୫ ୦ ୵ ୬ ଛଅ ପଇସା ।

ଏକ କାଳୀନ ବାରଖଣ୍ଡରୁ ଅଧିକ ନିଅନ୍ତ କଲେ ପ୍ରତିଖଣ୍ଡ ୫ ୦ ୵ ଏକଅଣା ମୂଲ୍ୟରେ ପାଇ ପାରିବେ ।

ପ୍ରାପ୍ତିସ୍ଥାନ — ଶର୍ମା ଶ୍ରୀ ହରିହର ମହାପାତ୍ର
ଦେବଗଡ଼, ବାମଣ୍ଡା

---

ସ୍ୱଦେଶ ବାସି ମାନଙ୍କର ସୁପରିଚିତ

# ଆୟୁର୍ବେଦୀୟ କୁଠିର ।

ଆମ୍ଭର ଏହି - ଔଷଧାଳୟରେ ସର୍ବପ୍ରକାର ରୋଗର ସଦ୍ୟ ଫଳପ୍ରଦ ଶାସ୍ତ୍ରୀୟ ଔଷଧମାନ ବିକ୍ରୟାର୍ଥ ରକ୍ଷିତ ଅଛି । କେହି କୌଣସି ଔଷଧ ପଠାଇବା ନିମନ୍ତେ ଆଦେଶ ଦେଲେ ଉକ୍ତ ଔଷଧ ଆମ୍ଭଠାରେ ରକ୍ଷିତ ନଥିଲେ ମଧ୍ୟ ସମ୍ଭବତଃ ଅଳ୍ପ ସମୟ ମଧ୍ୟରେ ପ୍ରସ୍ତୁତ କରି ପ୍ରେରଣ କରିଥାଉଁ । କେହି ରୋଗର ବିଶେଷ ବିବରଣ ସହ ଭିଜପଇସାର ଟିକଟ ପଠାଇଲେ ବିନା-ମୂଲ୍ୟରେ ବ୍ୟବସ୍ଥା ପାଇ ପାରିବେ । ବୋଲିବା ବାହୁଲ୍ୟ ଯେ କୃତ୍ରିମ ବା ହୀନ ବୀର୍ଯ୍ୟ ଔଷଧ ଆମ୍ଭ ନିକଟରେ ଆଦୌନାହିଁ । ନିଜର ବ୍ୟବସ୍ଥା ପ୍ରଣାଳୀ ଓ ଔଷଧାଦିର ଗୁଣାଗୁଣ ନିଜ ମୁଖରେ ବ୍ୟକ୍ତ କରିବା ଶୋଭନୀୟ ନୁହେଁ । ପରୀକ୍ଷା ପ୍ରାର୍ଥନୀୟ । ନିମ୍ନରେ କେତୋଟି ମହୌଷ ଫଳପ୍ରଦ ଔଷଧର ସଂକ୍ଷିପ୍ତ ବିବରଣ ପ୍ରକାଶ କଲୁଁ :

ସ୍ୱର୍ଣ୍ଣ ମୁକ୍ତାଦି ବହୁମୂଲ୍ୟ ଧାତୁ ଓ ରତ୍ନ ଘଟିତ

## ମହାନୀଳକଣ୍ଠ ରସ ।

ବଳ, ପୁଷ୍ଟିକର, ଧାତୁ ବିଶୋଧକ, ସ୍ମୃତି ଓ ମେଧାବର୍ଦ୍ଧକ, ଦୃଷ୍ଟି ପ୍ରସାଦକ ପୁରାତନ ଜଟିଳ ରୋଗରେ ପ୍ରତ୍ୟକ୍ଷ ଫଳପ୍ରଦ, କାନ୍ତି ଓ ମାନସିକ

ପ୍ରଫୁଲ୍ଲତା ବର୍ଦ୍ଧକ ଉତ୍କୃଷ୍ଟ ରସାୟନ ।

ମୂଲ୍ୟ ବ ୨୧ଟି ୫ ୨, ଦୁଇଟଙ୍କା ମାତ୍ର ।

## ବୃହତ୍ କସ୍ତୁରୀ ଭୈରବ ।

ଘୋର ସନ୍ନିପାତ ଜ୍ୱର ନିବାରକ, ଜୀବନୀ ଶକ୍ତିର ଉତ୍ତେଜକ ଏହି ଔଷଧକୁ ବ୍ୟବହାର କଲେ ଚେତନା ହୀନ ଅବସ୍ଥାରେ ମଧ୍ୟ ସୁଫଳ ଲାଭହୁଏ ।

ମା ୬ ଆକୁ ୦ ୨,

## ଜ୍ୱରାନ୍ତକ ବଟି ।

ବାତଜ, ପୈତ୍ତିକ, ଶ୍ଳୈଷ୍ମିକ ଓ ସାନ୍ନିପାତକାଦି ସର୍ବପ୍ରକାର ଜ୍ୱର କାସାଦି ଉପସର୍ଗରେ ସଂଶ୍ଳିଷ୍ଟ ହୋଇଥିଲେ ମଧ୍ୟ ଏହି ଔଷଧ ବ୍ୟବହାରରେ ନିଶ୍ଚୟ ଆରୋଗ୍ୟ ହୁଏ ଯେଉଁମାନେ ତ୍ରିଗୁଣକଳ୍ପ ମହର୍ଷିଗଣଙ୍କର ଅବିଷ୍କୃତ ଅମୃତକଳ୍ପ ଔଷଧ ପ୍ରତି ବୀତଶ୍ରଦ୍ଧ ଓ ବିଦେଶୀୟ ଔଷଧର ଏକାନ୍ତ ପକ୍ଷପାତି ହୋଇ ଜ୍ୱର ରୋଗର ଉତ୍କୃଷ୍ଟ ଦେଶୀୟ ଔଷଧ ନାହିଁ ବୋଲି କହୁଥାନ୍ତି ସେମାନେ ଥରେମାତ୍ର ଏହି ଜ୍ୱରାନ୍ତକ ବଟି ବ୍ୟବହାର କରନ୍ତୁ । ମୂଲ୍ୟ ବ ୨୧ ଟି ୩୦ । ଚାରିଅଣା ମାତ୍ର ।

## ଅଗ୍ନିକୁମାର ରସ ।

ସଦ୍ୟ ଫଳପ୍ରଦ ଏହି ଔଷଧକୁ ଅନୁପାନ ପ୍ରଭେଦରେ ବିବିଧ ରୋଗରେ ସେବନ କରିବାକୁ ହୁଏ । ସ୍ୱାସ୍ଥ୍ୟ-ରକ୍ଷାର ମୂଳ କାରଣ ଶାରୀରିକ ଅଗ୍ନି । ସେହି ଅଗ୍ନିକୁ ଦୀପ୍ତ କରିବା ନିମନ୍ତେ ଏହି ଔଷଧର ଶକ୍ତି ଅମୋଘ । ମୂତ୍ରଯନ୍ତ୍ର ରୋଗ—କିଡ଼ନି ଗ୍ରନ୍ଥି ପୀଡ଼ାରେ ଯେ ଏହା ମହୋପକାରୀ ତାହା ବୋଲିବା ବାହୁଲ୍ୟ ମାତ୍ର ।

ମୂଲ୍ୟ ବ ୨୧ ଟି ୦ । ଚାରିଅଣା

---

## ଲକ୍ଷ୍ମୀ ବିଳାସ ରସ ।

ପୁରାତନ ଜ୍ୱର, କାସ, ବିବିଧ ଶିରରୋଗ, କଣ୍ଠରୋଗ ଜନିତ ଶାରୀରିକ ଦୌର୍ବଲ୍ୟ ନାଶକରେ ଓ ବଳ, ପୁଷ୍ଟି, ସ୍ମୃତି ମେଧା ଦୃଷ୍ଟିଶକ୍ତି ବର୍ଦ୍ଧକ ।

ମୂଲ୍ୟ ବ ୨୧ ଟି ୦୧୮ ଏକଟଙ୍କା ମାତ୍ର

## କୁଟଜାସବ ।

ନଖାରୋଗବକୁ ପ୍ରବଳ ଅତିସାର ଓ ଗ୍ରହଣୀ ରୋଗରେ ଏହି ଔଷଧ ମନ୍ତ୍ରଶକ୍ତିପରି ଫଳ ପ୍ରଦାନ କରେ ଏହା ବସୁଚିକା ( ହାଇଜା ) ରୋଗର ମହୌଷଧ ।

ମୂଲ୍ୟ ଶି ୧ ଶି ୮୦ ୫ ଅଠଅଣା ମାତ୍ର ।

## ନେତ୍ର କୌମୁଦୀ ।

ସର୍ବପ୍ରକାର ନେତ୍ର ରୋଗରେ-ସଦ୍ୟ ଫଳପ୍ରଦ ଓ

ଦୃଷ୍ଟିର ପ୍ରସନ୍ନତା କାରକ ।

ଓ ୧ ବାଲୁ ୫ ୦ । ଗୃହ ଅଣା ମାତ୍ର

## ସୁଧାଂଶୁ ତୈଳ ।

ମନ୍ଦା ସୁଗନ୍ଧ ଏହ ତୈଳ ବ୍ୟବହାର କଲେ ବର୍ଣ୍ଣ-କାଳିମା, ଯୁବାନପିଡ଼କା ପ୍ରଭୃତି ମୁଖମଣ୍ଡଳର ଯାବତୀୟ ରୋଗ ଅରୋଗ୍ୟ ହୋଇ ମୁଖର ଚିକ୍କଣତା ଓ ମନୋ-ରମ କାନ୍ତି ବୃଦ୍ଧି ହୁଏ ।

ମୂଲ୍ୟ ଶି ୧ ଶିଶୁ ୫ ୦ ୧ ଅଠ ଅଣା ମାତ୍ର

## ବୃହତ୍ ସର୍ବଜ୍ୱର ହର ଲୌହ ।

ପ୍ଲିହାଦି ସଂଯୁକ୍ତ ଯେ କୌଣସି ପ୍ରକାର ଜ୍ୱର ଯେତେ ପୁରାତନ ହେଉନା କାହିଁକି ଏହା ସୁଧାଣ୍ଡ ସଦ୍ୟ ଫଳ ପ୍ରଦ ଔଷଧ ବ୍ୟବହାର କଲେ ନିଶ୍ଚୟ ଆରୋଗ୍ୟ ହୁଏ

ମୂଲ୍ୟ ବ ୨୧ ଟି ୫ ୧୫ ଦେଢ଼ଟଙ୍କା ମାତ୍ର

## କାସାନ୍ତକ ବଟି ।

ଯେ କୌଣସି ପ୍ରକାର କାସରୋଗ ହେଉନା କାହିଁକି ଅନୁପାନ ପ୍ରଭେଦରେ ଏହ ଔଷଧ ବ୍ୟବହାର କଲେ ନିଶ୍ଚୟ ଆରୋଗ୍ୟ ହୁଏ ।

ମୂଲ୍ୟ ବ ୨୧ ଟି ୫ ୦ । ଗୃହ ଅଣା!

## ରସେନ୍ଦ୍ର ଚୂର୍ଣ୍ଣ ।

ଯେ ଗ୍ରହଣୀ ଓ ଅତିସାର ରୋଗ ବନ୍ଧ ଔଷଧ

ବ୍ୟବହାରରେ ମଧ୍ୟ ଦୁର୍ଦ୍ଧର୍ଷ ଭାବରେ ବହୁକାଳରୁ ବହୁରୂପ ଧାରଣ କରି ଶରୀରକୁ ଆକ୍ରମଣ କରିଥାଏ ଏହି ଔଷଧ ବ୍ୟବହାର କଲାମାତ୍ରେ ତାହା ସତ୍ୱର ଅପସାରିତ ହେବାର ବାରମ୍ବାର ପ୍ରତ୍ୟକ୍ଷ କରା ଯାଇଅଛି ।

ମୂଲ୍ୟ ମା ୬° ବା ୧୪ ଚଉଦଙ୍କା ମାତ୍ର

## ମୋହିନୀ ବଟି ।

ବାସାଦ ରୋଗର ଅବ୍ୟର୍ଥ ମହୌଷଧ । ପରନ୍ତୁ ଯେକୌଣସି ରୋଗରେ କ୍ଷୁଧାର ଅଭାବ ଘଟିଲେ ଏହା ବ୍ୟବହାରରେ ତାହା ଦୂରହୋଇ ସୁକ୍ଷୁଧା ଲାଗିଥାଏ ।

ମୂଲ୍ୟ ବ ୬° ଟି ୧୦ ୫ ଆଠଅଣା ମାତ୍ର

## ପ୍ଲିହାନ୍ତକ ଚୂର୍ଣ୍ଣ ।

ପ୍ଲିହା ଓ ଯକୃତ୍ ରୋଗର ଉତ୍କୃଷ୍ଟ ଔଷଧ ।

ମୂଲ୍ୟ ମା ୬° ବାକ୍ସ ୧ ଏକଟଙ୍କା ମାତ୍ର

## ଆନନ୍ଦ ଭୈରବ ।

ଜ୍ୱରଯୁକ୍ତ ଝାଡ଼ା ରୋଗର ମହୌଷଧ ।

ମୂଲ୍ୟ ବ ୬° ଟି ୫୦ । ଚାରିଅଣା ମାତ୍ର

## କ୍ଷତାନ୍ତକ ।

ସର୍ବପ୍ରକାର କ୍ଷତ ଅର୍ଥାତ୍ ଘା ର ପରୀକ୍ଷିତ ଔଷଧ ।

ମୂଲ୍ୟ ଡ ୧ ବା ୫୦ । ଚାରିଅଣା

# ପିୟୂଷବଲ୍ଲି ରସ ।

ଏହି ବହୁମୂଲ୍ୟ ଔଷଧ ସେବନରେ ସର୍ବପ୍ରକାର ଅତିସାର ଗ୍ରହଣୀ ପ୍ରଭୃତି ରୋଗ ଶୀଘ୍ର ଅନ୍ତର୍ଦ୍ଧାନ ହୁଏ । ବିଶେଷତଃ ଏହା ପୁରାତନ ଗ୍ରହଣୀ ଓ ରକ୍ତାତିସାରର ଉତ୍କୃଷ୍ଟ ଔଷଧ ।

ମୂଲ୍ୟ ବ ୨୧ ଟି ଠ ୧ (ଏକଟଙ୍କା ମାତ୍ର

ପ୍ରାପ୍ତିସ୍ଥାନ

କବିରାଜ ଶ୍ରୀ ହରିହର ମହାପାତ୍ର ଶର୍ମ୍ମା

ପୋଃ ଦେବଗଡ଼-ବାମଣ୍ଡା